# ସ୍ତ୍ରୀର ଚିଠି

ରବୀନ୍ଦ୍ରନାଥ ଠାକୁର



ଖୁସିରେ ପଢ଼ିବା ଅଭିଯାନ

## ଭାରତ ଜ୍ଞାନ ବିଜ୍ଞାନ ସମିତି

## ଓଡ଼ିଶା

# ସ୍ତ୍ରୀର ଚିଠି


ଲେଖକ　　ରବୀନ୍ଦ୍ର ନାଥ ଠାକୁର

ଅନୁବାଦ　　ଡାକ୍ତର ମଦନ ମୋହନ ପ୍ରଧାନ

ଅଙ୍କନ　　ଗୌରୀଶଙ୍କର ବେହେରା

ପ୍ରକାଶକ　　ଭାରତ ଜ୍ଞାନ ବିଜ୍ଞାନ ସମିତି
ସି-୨ ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା ଭୁବନେଶ୍ୱର-୭୫୧୦୦୩
ଫୋନ୍- (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା　　କୋଣାର୍କ ଡାଟା ପ୍ରୋସେସିଂ, ଭୁବନେଶ୍ୱର

ମୁଦ୍ରଣ　　ପଦ୍ମାକମର୍ସିଆଲ, ଭୁବନେଶ୍ୱର

ମୂଲ୍ୟ　　ଦୁଇ ଟଙ୍କା

ପ୍ରକାଶ କାଳ　　ଜାନୁଆରୀ ପହିଲା - ୧୯୯୭


ଏହି ପୁସ୍ତିକାଟି 'ଖୁସିରେ ପଢ଼ିବା ଅଭିଯାନ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡ଼ିଶାର ଗାଁ ଗହଳିର ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବାପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।


● **A LETTER FROM WIFE** ● Writer: Rabindranath Tagore, ● Translator: Dr Madan Mohan Pradhan ● Illustration: Gouri Shankar Behra ● Published by: **Bharat Gyan Vigyan Samiti, Orissa for Jan Vachan Andolan** ● Price: Rs. 2.00 ● Publication period: Ist January 1997

ପୂଜ୍ୟ ସ୍ୱାମୀ,

ପନ୍ଦର ବର୍ଷତଳେ ଆମର ବାହାଘର ହୋଇଥିଲା । ସେଇଦିନୁ ଆମେ ସାଥିହୋଇ ରହିଛନ୍ତି । ଆଜିଯାଏ ମୁଁ ଚିଠି ଲେଖିବାର ମଉକା ପାଇନଥିଲି । ମୁଁ ତୁମ ଘରର ମଝିଆଣୀ ବୋହୂ । ପୁରୀକୁ ଜଗନ୍ନାଥ ଦର୍ଶନପାଇଁ ଆସିଥିଲି ।

ଏଠାକୁ ଆସି ଜାଣିଲି ଯେ, ଏତେ ବଡ଼ ଦୁନିଆ ଓ ଭଗବାନଙ୍କ ସହ ମୋର ଏକ ଅଲଗା ସମ୍ପର୍କ ରହିଛି । ଏଥିପାଇଁ ଆଜି ଚିଠି ଲେଖିବାକୁ ସାହସ କରିଛି । ଏହାକୁ ମଝିଆଣୀ ବୋହୂର ଚିଠି ବୋଲି, ଭାବିବ ନାହିଁ।

ମୋର ସେ ଦିନ କଥା ମନେ ପଡ଼ିଯାଉଛି, ଯେଉଁଦିନ ତୁମ ଘରଲୋକେ ମୋତେ ଦେଖିବାକୁ ଯାଇଥିଲେ । ସେତେବେଳେ ମୋ





ବୟସ ବାର ବର୍ଷ ହୋଇଥାଏ । ଆମ ଘରଟି ସୁଦୂର ପଲ୍ଲୀରେ ଥିଲା । ସେଠାରେ ପହଞ୍ଚିବାକୁ ତୁମ ଘର ଲୋକ ବହୁତ ହରକତ ହୋଇଥିଲେ । ଆମ ଘରଲୋକେ ତୁମ ଲୋକଙ୍କର କୁଣିଆ ଚର୍ଚ୍ଚା କରୁ କରୁ ହଇରାଣ ହୋଇଯାଇଥିଲେ ।

ବିବାହ ଉତ୍ସବର ଶଙ୍ଖ ମହୁରୀ ବାଜିଉଠିଥିଲା । ମେଲାଣି ବେଳର କାନ୍ଦଣାର କରୁଣ ସ୍ବର ଗୁଞ୍ଜରିତ ହୋଇଥିଲା । ମୁଁ ବାପଘରୁ ତୁମ ଘରକୁ ଆସିଲି ମଝିଆଣୀ ବୋହୂ ହୋଇ । ସାହି ସ୍ତ୍ରୀଲୋକମାନେ ଓଢ଼ଣୀ ଆଢ଼େଇ ମୋତେ ଦେଖିବାକୁ ଲାଗିଲେ । ସମସ୍ତେ ମାନିଗଲେ ବୋହୂ ବହୁତ ସୁନ୍ଦରୀ । ମୁଁ ସୁନ୍ଦରୀ ବୋଲି ତୁମ ଘର ଲୋକେ ଖୁବ୍ ଶୀଘ୍ର ଭୁଲିଗଲେ । ମାତ୍ର ମୁଁ ବୁଦ୍ଧିମତୀ ବୋଲି ତୁମେମାନେ ଇଚ୍ଛା କରିବି ଭୁଲିପାରିଲ ନାହିଁ ।



ମୋ ମାଆ କହୁଥିଲେ ସ୍ତ୍ରୀ ପାଇଁ ତା ବୁଦ୍ଧିଆ ମୁଣ୍ଡ ତା'ର ଅସ୍ତ୍ର । କିନ୍ତୁ ମୁଁ ଅବା କଅଣ କରି ପାରିଥାଆନ୍ତି । ତୁମ ଲୋକେ,ଉଠିଲେ ବସିଲେ କହିଲେ ବୋହୂର ବୁଦ୍ଧି ବଡ଼ ତେଜ । ଲୋକେ ଭଲ ମନ୍ଦ ଯିଏ ଯାହା ପାରିଲେ କହିଲେ । ମୁଁ ସବୁକିଛି କ୍ଷମା ଦେଇ ଦେଲି ।

ମୁଁ ଲୁଚି ଲୁଚି କବିତା ଲେଖୁଥିଲି । ମୋ କବିତା ବହୁତ ମାମୁଲି ଧରଣର ହେଲେ ବି ତା ଭିତରେ ଥିଲା ମୋ ମନ ଗହୀର କଥା ।ଏ କବିତାଗୁଡ଼ିକ ତୁମ ନୀତି ନୀୟମ ଭିତରେ ବନ୍ଧା ନଥିଲେ ।

ଦଇବ କାଳହେଲା । ମୋ କୁନି ଝିଅଟିକୁ ମୋଠାରୁ ଚିରଦିନପାଇଁ ଛଡ଼େଇ ଦେ ଲା । କିନ୍ତୁ ମୋତେ ଛାଡ଼ିଗଲା । ମା ହେବାର ଗର୍ଭ କଷ୍ଟ ସହିଲି । ମାତ୍ର ମା'ଡାକ ଶୁଣିବାର ସୁଖଟିକକ ପାଇ ପାରିଲି ନାହିଁ ।

ଏ ଦୁଃଖକୁ ପାର ହୋଇଗଲି । ନିତି ଦିନିଆ କାମରେ ଲାଗିଗଲି । ତୁମଘରର ଗାଈ ମଇଁଷିଙ୍କ କଥା ବୁଝିଲି । ତୁମ ଘରର ପରିବେଶ ବଡ଼ ନିରସିଆ ଥିଲା । ପିଞ୍ଜରା ଭିତରେ ବନ୍ଦୀ ହେଲା ଭଳି ଲାଗୁଥିଲା । ଗାଈ ମଇଁଷିମାନେ ଯାହା ନିଜର ଲାଗୁଥିଲେ । ଏହିପରି ଭାବରେ ମୋ ଜୀବନ ବିତି ଯାଇଥାନ୍ତା । ଆଜିର ଏ ଚିଠି ମୁଁ ଲେଖି ନ ଥାନ୍ତି ।

କିନ୍ତୁ ହଠାତ୍ ମୋ ଗୃହସ୍ଥ ଜୀବନରେ ଏକ ନୂଆ ମୋଡ଼ ଚାଲି ଆସିଲା । ବଞ୍ଚିବାର ମଞ୍ଜିଟିଏ ମୋ ଜୀବନ ମାଟିରେ ଖସି ପଡ଼ିଲା । ଏହି ମଞ୍ଜିଟି ଗଛ ହେଲା ଓ ମୋ ଗୃହସ୍ଥ ଜୀବନକୁ ହଲେଇ ଦେଲା ।

ବଡ଼ ଜାଆଙ୍କ ମା'ଙ୍କର କାଳ ହେଲା।ତାଙ୍କ ଭଉଣୀ ବିନ୍ଦୁ ତୁମ ଘରେ ପହଞ୍ଚିଲା । ତୁମୋମାନେ ବଡ଼ ଅସ୍ତବ୍ୟସ୍ତ ହୋଇପଡ଼ିଲ । ବିନ୍ଦୁ





ପାଖରେ ରୂପ ନଥିଲା କି ଧନ ନଥିଲା । ବିନ୍ଦୁ ପାଇଁ ବଡ଼ ଜାଆ ବଡ଼ ଅଡୁଆରେ ପଡ଼ିଯାଇଥିଲେ । ଗୋଟିଏ ପଟେ ଭଉଣୀ ପ୍ରତି ସ୍ନେହ ମମତା ଓ ଅନ୍ୟପଟେ ଶାଶୁଘରର ନିନ୍ଦା ଅପବାଦ ।

ଅନାଥ ଝିଅଟିର ଏ ଅବସ୍ଥା ଦେଖି ମୁଁ ନୀରବ ରହି ପାରିଲି ନାହିଁ । ବିନ୍ଦୁକୁ ମୋ ପାଖରେ ରହିବାକୁ ଜାଗା ଦେଲି । ବଡ଼ ଜାଆ ଟିକିଏ ନିଶ୍ୱାସ ମାରିଲେ । ସବୁ ଦୋଷ ମୋ ଉପରେ ପଡ଼ିଲା । ପ୍ରଥମେ ପ୍ରଥମେ ମୋ ସ୍ନେହ ମମତା ପାଇ ବିନ୍ଦୁକୁ ସଂକୋଚ ଲାଗୁଥିଲା।କିନ୍ତୁ ଧୀରେ ଧୀରେ ସେ ମୋତେ ବହୁତ ଭଲ ପାଇ ବସିଲା । ବିନ୍ଦୁ ତା'ର ବିଶାଳ ପ୍ରେମ ସାଗରରେ ମୋତେ ବୁଡାଇ ଦେଲା । ମୋତେ କିଏ ଏତେ ପ୍ରେମ ଓ ସମ୍ମାନ ଦେବ ଏକଥା ମୁଁ ଚିନ୍ତା ବି କରି ପାରୁ ନଥିଲି ।

ବିନ୍ଦୁ ପ୍ରତି ମୋର ସ୍ନେହ ଓ ପ୍ରେମ ତୁମମାନଙ୍କର ଅନ୍ଧ ଆଖିକୁ ଗଲାନାହିଁ । ମୋର ମନେ ଅଛି ସେ ଦିନ କଥା, ଯେଉଁ ଦିନ କଙ୍କଣ ଚୋରି ହୋଇ ଯାଇଥିଲା । ବିନ୍ଦୁ ଚୋରି କରିଛି ବୋଲି ତୁମେମାନେ ସମସ୍ତେ ଦୋଷ ଦେଇ ବସିଲ ।

ବିନ୍ଦୁକୁ ଜ୍ୱର ହେଲା । ତା ମୁହଁରେ ଲାଲ ଲାଲ ଘିମିରି ଭଳି ବାହାରିଲା । ତୁମେମାନେ କହି ବୁଲିଲ ଇଏ ତା ପାପର ଫଳ । ସିଏ ଚୋରି କରିଛି ବୋଲି ତ ଆଉ କୌଣସି ପ୍ରମାଣ ନଥିଲା । ସିଏ ବିନ୍ଦୁ ହୋଇ ଜନ୍ମ ହେବା ହିଁ କେବଳ ତା'ର ପ୍ରମାଣ ।

ବିନ୍ଦୁ ବଡ଼ ହେବାକୁ ଲାଗିଲା । ସେ ବଡ଼ ହେବା ସଂଗେ ସଂଗେ ତୁମମାନଙ୍କର ଗାଳିଗୁଲଜ ବି ବଢୁଥିଲା । ଯେତେବେଳେ ଝିଅଟାକୁ ଘରୁ



ବାହାର କରିବାପାଇଁ ଆଉ କୌଣସି ଉପାୟ ମିଳିଲା ନାହିଁ, ସେତେବେଳେ ତୁମେ ତାକୁ ବାହା ଦେବାକୁ ସ୍ଥିର କଲ ।

ପୁଅଘରୁ ଝିଅ ଦେଖିବାକୁ ବି କେହି ଆସିନଥିଲେ । ତୁମେମାନେ କହିଲ, "ପୁଅ ଘରେ କହିଛନ୍ତି ବିବାହ ପୁଅ ଘରେ ହେବ । ଏଇଟା ପୁଅ ଘରର ରୀତି ।"ଏକଥା ଶୁଣି ମୋ ଛାତି ଥରି ଉଠିଥିଲା।ବାହାଘର ଦିନ ପର୍ଯ୍ୟନ୍ତ ବିନ୍ଦୁ ବଡ଼ ଭଉଣୀଙ୍କ ପାଦଧରି ମିନତୀ କରୁଥିଲା- ନାନୀ ମୋତେ ଏଇମିତି ବାହାର କରିଦେନା ।

ମୁଁ ତୁମ ଗାଈ ଗୁହାଳରେ ପଡ଼ିରହିବି । ଯାହା କହିବ ତାହା କରିବି..... । ବିଚାରୀ ନିରାଶ୍ରୟା ! ଶେଷରେ କାନ୍ଦି କାନ୍ଦି ମୋତେ କହିଲା, ନାନୀ ସତରେ ମୁଁ କଅଣ ଏକୁଟିଆ ହୋଇଗଲି ।





ମୁଁ କହିଲି ନା, ବିନ୍ଦୁ ନା । ତୋର ଦୁଃଖ ସୁଖରେ ମୁଁ ରହିଛି । ବଡ଼ ଜାଆଙ୍କ ଆଖିରେ ଲୁହ ଜକେଇ ଆସୁଥିଲା । ସେ ବିନ୍ଦୁକୁ ବୁଝାଇ କହିଲେ ବିନ୍ଦୁ ମନେରଖିଥା, ''ପତି ହେଉଛନ୍ତି ପତ୍ନୀର ପରମେଶ୍ୱର''

ବିନ୍ଦୁର ବାହାଘର ତିନି ଦିନ ବିତିଯାଇଥିଲା।।ସେ ଦିନ ସକାଳୁ ମୁଁ ଗୁହାଳକୁ ଗାଈ ମଇଁଷି ଦେଖିବାକୁ ଯାଇଥିଲି । ମୋତେ ଦେଖି ଭୋ ଭୋ କରି କାନ୍ଦିବାକୁ ଲାଗିଲା ।

ବିନ୍ଦୁ କହିଲା, ତା ସ୍ୱାମୀ ଗୋଟାଏ ପାଗଳ । ଚଣ୍ଡି ଶାଶୁ ଆଉ ପାଗଳ ସ୍ୱାମୀ ହାବୁଡ଼ରୁ କୌଣସି ମତେ ସେ ପଳାଇ ଆସିଛି ।

ରାଗ ଓ ଘୃଣାରେ ମୁଁ ଜଳିଗଲି । ମୁଁ କହିଲି, ''ଇଏ କି ପ୍ରକାର ଠକାମି । ଇଏ କଅଣ ଗୋଟାଏ ବାହାଘର ! ତୁ ମୋ ପାଖରେ ରହିବୁ ।

ଦେଖିବି ତୋତେ ମୋ ପାଖରୁ କିଏ ନେଇଯିବ ।''

ତୁମେମାନେ ମୋ ଉପରେ ଭୀଷଣ ଖପା ହେଲ । ସମସ୍ତେ କହି ବୁଲିଲେ ''ବିନ୍ଦୁ ମିଛ କହୁଛି ।'' କିଛି ସମୟ ପରେ ବିନ୍ଦୁର ଶାଶୁ ଘର ଲୋକେ ବିନ୍ଦୁକୁ ନେବାପାଇଁ ଆସିଲେ ।

ମୋତେ ଅପମାନରୁ ରକ୍ଷା କରିବାପାଇଁ ବିନ୍ଦୁ ସେମାନଙ୍କ ଆଗକୁ ଚାଲିଆସିଲା । ସେମାନେ ବିନ୍ଦୁକୁ ନେଇଗଲେ । ମୋର ହୃଦୟ ଦୁଃଖରେ ଉବୁଟୁବୁ ହୋଇ ଉଠିଲା । ମୁଁ ବିନ୍ଦୁକୁ ରଖି ପାରିଲି ନାହିଁ।ମୁଁ ବୁଝିଗଲି, ବିନ୍ଦୁ ମରିଯିବ ପଛେ ଆଉ ଆମ ପାଖରେ ଶରଣ ପଶିବ ନାହିଁ ।

ଏ ସମୟରେ ମୁଁ ଶୁଣିଲି, ବଡ଼ ପିଉସୀ ତୀର୍ଥ ଦର୍ଶନପାଇଁ ପୁରୀ ଜଗନ୍ନାଥ ଦର୍ଶନ କରିବାକୁ ବାହାରିଛନ୍ତି । ମୁଁ କହିଲି, ମୁଁ ସାଙ୍ଗରେ ଯିବି । ଏକଥା ଶୁଣି ତୁମେ ସମସ୍ତେ ଭାରି ଖୁସି ହେଲ ।

ମୁଁ ମୋ ଭାଇ ଶରତକୁ ଡକାଇ ପଠାଇଲି । ତାକୁ କହିଲି, ଭାଇ, ଆସନ୍ତା ବୁଧବାରକୁ ମୁଁ ପୁରୀ ଯିବି । ଯେ କୌଣସି ପ୍ରକାରେ ବିନ୍ଦୁକୁ ଗାଡ଼ିରେ ବସାଇବାକୁ ହେବ ।'' ସେହିଦିନ ସନ୍ଧ୍ୟାକୁ ଶରତ ଫେରି ଆସିଲା । ତା ଫିକା ମୁହଁ ଦେଖି ମୋ ମୁଣ୍ଡରେ ରାଗ ଚଢ଼ିଗଲା । ମୁଁ ତାକୁ ପଚାରିଲି, ''ବିନ୍ଦୁକୁ କଅଣ ରାଜି କରାଇ ପାରିଲୁନି ।'' ଶରତ ଉତ୍ତର ଦେଲା "ରାଜି କରାଇବା ଦରକାର ପଡ଼ିଲା ନାହିଁ। ବିନ୍ଦୁ କାଲି ଦେହରେ ନିଆଁ ଲଗାଇ ଆତ୍ମହତ୍ୟା କରିଛି ।"

ଏକଥା ଶୁଣି ମୋ ହାତ ଗୋଡ଼ ନିଥର ହୋଇଗଲା । ମୁଁ ତୀର୍ଥ କରିବାକୁ ପୁରୀ ଆସିଛି । ବିନ୍ଦୁକୁ ଏତେବାଟ ଆସିବାକୁ ଦରକାର ପଡ଼ିଲାନି । କିନ୍ତୁ ମୋ ପାଇଁ ଏହା ଅତି ଜରୁରୀ ଥିଲା ।

ଯାହାକୁ ଲୋକେ ଦୁଃଖ କଷ୍ଟ କହନ୍ତି, ତାହା ମୋ ଜୀବନରେ ଆସିନାହିଁ।ତୁମ ଘରେ ଖାଇବା ପିଇବାର କୌଣସି ଅଭାବ ନାହିଁ । ତୁମ ବଡ଼ ଭାଇଙ୍କ ଚରିତ୍ର ଯାହା ହେଉନା କାହିଁକି ତୁମର ଚ କୌଣସି ଖୁଣ ନ ଥିଲା । ତେଣୁ ମୋର କୌଣସି ଅଭିଯୋଗ ନାହିଁ । କିନ୍ତୁ, ମୁଁ ଆଉ ତୁମ ଘରକୁ ଫେରି କରି ଯିବି ନାହିଁ ।

ମୁଁ ବିନ୍ଦୁ ଭଳି ଝିଅର ଜୀବନ ଦେଖିଛି । ଘରର ଘରଣୀ ସାଜିଛି । ଗୃହସ୍ଥ ଜୀବନର ସ୍ୱାଦ ଚାଖିଛି । ସ୍ୱାମୀ ସୁଖ ପାଇଛି । ଏବେ ଏସବୁର କୌଣସି ଆବଶ୍ୟକତା ନାହିଁ ।

ମୁଁ ଏବେ ନୀଳ ସାଗର ସାମନାରେ ଛିଡ଼ା ହୋଇଛି । ତୁମେମାନେ ମୋତେ ରୀତି ନୀତିର ପରଦା ଭିତରେ କିଳି କରି ରଖିଥିଲ । ଜାଣିନାହିଁ ବିନ୍ଦୁ କିପରି ପରଦା ହଟାଇ ମୋତେ ଦେଖିନେଲା । ବିନ୍ଦୁର ମୃତ୍ୟୁ ଆଜି ମୋ ପାଖରୁ ସବୁ ପରଦାକୁ ହଟାଇ ଦେଇଛି । ମୋତେ ମୁକ୍ତ କରି ଦେଇଛି । ଆଜି ତୁମ ମଝିଆଣୀ ବୋହୂ ଏଇଠି ଶେଷ ହୋଇଯାଇଛି ।

ତୁମେ ଭାବୁଥିବ ମୁଁ ବିନ୍ଦୁ ପରି ଆତ୍ମହତ୍ୟା କରିବାକୁ ଯାଉଛି । ନା ଏମିତି ଭୟ କରନି । ଏଭଳି ପୁରୁଣା କାଳିଆ କଥାରେ ମୋର ବିଶ୍ୱାସ ନାହିଁ ।

ମୀରାବାଈ ବି ମୋ ପରି ନାରୀ ଥିଲେ,ତାଙ୍କର ବି କିଛି କମ୍ ବନ୍ଧନ ନ ଥିଲା ! ମାତ୍ର ମୁକ୍ତିପାଇଁ ସେ ଆତ୍ମହତ୍ୟା କରି ନଥିଲେ । ମୋ ନିଜ ଉପରେ ଯଥେଷ୍ଟ ଭରସା ଅଛି । ମୁଁ ବଞ୍ଚି ପାରିବି,ଆଉ ବଞ୍ଚିବି ମଧ୍ୟ ।

ତୁମମାନଙ୍କ
ଆଶ୍ରୟରୁ ମୁକ୍ତ
ମୃଣାଳ